# ପୁରାଣ କଥା ପଢ଼ିବା ଆସ

## ପ୍ରଥମ ଭାଗ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଭୁବନେଶ୍ୱର

# ପୁରାଣ କଥା ପଢ଼ିବା ଆସ

## (ପ୍ରଥମ ଭାଗ)



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଜନଶିକ୍ଷା ଭବନ, ୟୁନିଟ୍-୫
ଭୁବନେଶ୍ୱର-୭୫୧୦୦୧

| | |
|---|---|
| ବହିର ନାମ | **ପୁରାଣ କଥା ପଢ଼ିବା ଆସ** (ପ୍ରଥମ ଭାଗ) |
| ଲେଖକ ମଣ୍ଡଳୀ | ଶ୍ରୀ ଗୌରୀବନ୍ଧୁ କର |
| | ଅଧାପିକା ଶ୍ରୀମତୀ କ୍ଷୀରୋଦ୍ରା ପରିଜା |
| | ଶ୍ରୀ ଦୁଃଖିଶ୍ୟାମ ପଟ୍ଟନାୟକ |
| | ଡଃ ଭଗବାନ ପଣ୍ଡା |
| ପ୍ରଥମ ମୁଦ୍ରଣ | ୧୯୯୬ |
| ପ୍ରକାଶନ ସଂଖ୍ୟା | ଏସ୍. ଆର. ସି - ୧୬୯-୧/୯୬ |
| ଛାପାସଂଖ୍ୟା | ଦୁଇ ହଜାର |
| ପ୍ରକାଶକ ଓ | ଡ଼କ୍ଟର ବିମଳେନ୍ଦୁ ମହାନ୍ତି, ନିର୍ଦ୍ଦେଶକ, |
| ସ୍ୱତ୍ୱାଧିକାରୀ | ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା |
| | ଜନଶିକ୍ଷା ଭବନ, ଭୁବନେଶ୍ୱର-୭୫୧୦୦୧ |
| ଅଙ୍ଗସଜ୍ଜା ଓ ପ୍ରଚ୍ଛଦ : | ଶ୍ରୀ ବ୍ରଜ କିଶୋର ଜେନା |
| ମୁଦ୍ରଣ | ନିସ୍ୱାସ, ଭୁବନେଶ୍ୱର-୧୬ |
| ମୂଲ୍ୟ | ତିନିଟଙ୍କା ପଚାଶ ପଇସା ମାତ୍ର |

**PURAN KATHA PADHIBA ASA** (Part-I)

| | |
|---|---|
| Written by | : Shri S. Kar |
| | Smt. K. Parija |
| | Shri D. Pattanaik |
| | Dr. B. Panda |
| Year of Publication | : 1996 |
| Publication No. | : SRC-169-1/96 |
| No. of Copies | : 2000 |
| Published & | : Dr. B. Mohanty, Director, SRC for AE, |
| owned by | Orissa, Bhubaneswar - 751001 |
| Cover & Layout | : Shri B. K. Jena |
| Printer | : NISWASS, Bhubaneswar-16 |
| Price | : Rupess Three and Fifty Paise only |

# ସୂଚୀ

# ନଚିକେତା ନୂଆ ଆଲୋକ ପାଇଲେ

ନଚିକେତା ଉଦ୍ଦାଳକଙ୍କର ଗୋଟିଏ ବୋଲି ପୁଅ । ଥରେ ଉଦ୍ଦାଳକ ହୋମ କଲେ । ହୋମର ନାମ 'ବିଶ୍ୱଜିତ୍ ହୋମ' । ଅନେକ ଦାନ ଧର୍ମ କଲେ ।

ଏହି ହୋମରେ ସବୁ ଦାନ କରାଯାଏ । ଧନ, ଦରବ, ଗାଈ-ଗୋରୁ ଆଦି ସବୁ କଥା । ନଚିକେତା ଭାବିଲେ, ''ବାପା ହୋମରେ ସବୁ ଧନଦରବ ଦାନ ଦେଲେ । ମୁଁ ତାଙ୍କର ଗୋଟିଏ ବୋଲି ପୁଅ । ତାଙ୍କର ସବୁଠାରୁ ବଡ଼ ଧନ । ହେଲେ କାଇଁ ବାପା ମତେ ତ କାହାକୁ ଦାନ କଲେ ନାହିଁ ?''

ସେ ବାପାଙ୍କୁ ପଚାରିଲେ, ''ବାପା, ମତେ କାହିଁକି କାହାକୁ ଦାନ ଦେଲେ ନାହିଁ ?''

ବାପା ଚୁପ୍ ରହିଲେ । କିଛି ଉତ୍ତର ଦେଲେ ନାହିଁ । ହେଲେ ନଚିକେତା ଛାଡ଼ିବା ପିଲା ନୁହନ୍ତି । ପୁଣି ସେ ପଚାରିଲେ, ''ବାପା, ମତେ କାହାକୁ ଦାନ ଦେଲେ କହୁ ନାହାନ୍ତି ?''

ଋଷି ରାଗିଯାଇ କହିଲେ, ''ତୋତେ ମୁଁ ଯମକୁ ଦାନ ଦେଲି ।''

ଯମରାଜା ମରିବା ଲୋକଙ୍କୁ ନିଅନ୍ତି । ତାଙ୍କ ରାଇଜର ନାମ ଯମପୁର । ଲୋକେ ଯମପୁର ନାଆଁ ଶୁଣିଲେ ଡରନ୍ତି ।

ନଚିକେତା ବଡ଼ ସାହସୀ । ସେ ଯମପୁରରେ ଯାଇ ପହଞ୍ଚିଲେ । ସେତେବେଳେ ଯମରାଜା ଘରେ ନ ଥିଲେ । ନଚିକେତା ଯମରାଜାଙ୍କ ଦୁଆର ମୁହଁରେ ବସି ରହିଲେ । ଯମରାଜାଙ୍କ ଲୋକମାନେ ତାଙ୍କୁ ଖାଇବାକୁ ଡାକିଲେ । ହେଲେ ସେ କିଛି ଛୁଇଁଲେ ନାହିଁ । ଏମିତିକି ପାଣିଟୋପାଏ ବି ପିଇଲେ ନାହିଁ । ଯମ ଆସିବାକୁ ତିନି ଦିନ ଡେରି ହେଲା । ତିନି ଦିନ ସେଇମିତି ବସି ରହିଲେ । ବାଳକ ନଚିକେତା ପିତାଙ୍କର ଆଦେଶ ପାଳନ କରିବେ । ଏହା ହିଁ ତାଙ୍କର କର୍ତ୍ତବ୍ୟ ।

ଯମରାଜା ତିନି ଦିନ ପରେ ଫେରିଲେ । ଦୁଆର ମୁହଁରେ ସେ ନଚିକେତାକୁ ଦେଖିଲେ । ବାଳକଟିଏ ବସିଛି । ତା' ମୁହଁରୁ ସାହସ ଆଉ ତେଜ ବାରି ହୋଇଯାଉଛି । ଯମରାଜା ସ୍ତ୍ରୀଙ୍କଠାରୁ

ଶୁଣିଲେ, ବାଳକଟି ତିନି ଦିନ ହେଲା ଖାଇ ନାହିଁ । ଅଖିଆ ଅପିଆ ତାଙ୍କୁ ଅପେକ୍ଷା କରି ବସିଛି ।



ଏସବୁ ଶୁଣି ଯମ ମନ ଦୁଃଖ କଲେ । ନଚିକେତା ତାଙ୍କର ଅତିଥି । ତିନି ଦିନ ହେଲା ଉପବାସ ଅଛନ୍ତି । ଅତିଥିସେବା ମାଧବ ସେବା । ତେଣୁ ସେ ନଚିକେତାଙ୍କୁ ଆଗେ ଖାଇବାକୁ ଦେଲେ । ଖିଆପିଆ ସରିଲା । ସେ ତିନି ଦିନ ଅପେକ୍ଷା କରିଥିବା ହେତୁ ଯମ ତିନୋଟି ବର ଯାଚିଲେ ।

ବାଳକ ନଚିକେତା ଜ୍ଞାନୀ ଓ ବିନୟୀ । ବାପାଙ୍କଠାରେ ତାଙ୍କର ଭାରି ଭକ୍ତି । ସେ ଯମରାଜାଙ୍କୁ କହିଲେ, ''ପ୍ରଭୁ ! ମୋ ବାପା ମୋ ଉପରେ ରାଗିଛନ୍ତି । ସେ ରାଗରେ ମୋତେ ଆପଣଙ୍କୁ ଦାନ କରିଦେଇଛନ୍ତି । ଆଗ ଆପଣ ମୋ ବାପାଙ୍କର ରାଗ ଶାନ୍ତ କରାନ୍ତୁ । ପୁଅ ଉପରେ ବାପା ଖୁସି ନ ହେଲେ ପୁଅର ଅମଙ୍ଗଳ ହେବ ।''

ଯମରାଜା ନଚିକେତାଙ୍କ କଥାରେ ରାଜି ହେଲେ । ତା'ପରେ ନଚିକେତା ଦ୍ୱିତୀୟ ବର ମାଗିଲେ ।

''ସ୍ୱର୍ଗରେ କେହି ମରେନି । କେହି ବୁଢ଼ା ହୁଏନି । ସେଠାରେ ଥିବା ଲୋକମାନଙ୍କୁ ଭୋକ, ଶୋଷ ହୁଏ ନାହିଁ । ସମସ୍ତେ ସବୁବେଳେ ଆନନ୍ଦରେ ଥାଆନ୍ତି । ଯେଉଁ ସାଧନା କଲେ ସ୍ୱର୍ଗ ସୁଖ ମିଳେ ମୋତେ ସେହି ବିଦ୍ୟା ଦିଅନ୍ତୁ ।''

ଯମରାଜା ନଚିକେତାଙ୍କୁ ସେହି ବିଦ୍ୟା ଦେଲେ । ନଚିକେତା ଏଥର ତୃତୀୟ ବର ମାଗିଲେ ।

ସେ ପଚାରିଲେ, ''ମଣିଷ ମରିବା ପରେ କ'ଣ ହୁଏ ? ଏ କଥା ଜାଣିବା ପାଇଁ ମତେ ଜ୍ଞାନ ଦିଅନ୍ତୁ ।''

ଯମରାଜା ମନେ ମନେ ନଚିକେତାଙ୍କୁ ପ୍ରଶଂସା କଲେ । କିନ୍ତୁ ସେ ବିଷୟରେ ତାଙ୍କୁ କହିବାକୁ ଠିକ୍ ଭାବିଲେ ନାହିଁ । ଅନ୍ୟ ବର ମାଗିବାକୁ ସେ କହିଲେ ।

ନଚିକେତା ବୁଦ୍ଧିମାନ୍ । ତାଙ୍କର ଜୀବନ ଓ ମରଣର ଭିତିରି କଥା ଜାଣିବା ଦରକାର । ସେ ଯମରାଜାଙ୍କୁ ବିନୟର ସହିତ ପୁଣି ମାଗିଲେ, ''ମରଣ ପରେ କ'ଣ ହୁଏ, ମତେ ସେ ଜ୍ଞାନ ଦିଅନ୍ତୁ ।''

ଯମରାଜା ନଚିକେତାଙ୍କୁ ପ୍ରଶଂସା କରି କହିଲେ, ''ହେ ନଚିକେତା, ତୁମର ମନ ସରଳ । ତୁମର ଭୟ ନାହିଁ । ତେଣୁ ତୁମକୁ ମୁଁ ଜୀବନ ଓ ମରଣର ଜ୍ଞାନ ଦେବି ।''

ଯମରାଜା ନଚିକେତାଙ୍କୁ ବୁଝାଇଦେଲେ । ସେ କହିଲେ, ''ଆତ୍ମା ଅମର । ତାହା କେବେ ମରେ ନାହିଁ । ଇନ୍ଦ୍ରିୟମାନଙ୍କୁ ବଶ କରିପାରିଲେ ମଣିଷ ଜୀବନ ସଫଳ ହୁଏ ।''

ବାଳକ ନଚିକେତା ଜୀବନ ବିଷୟରେ ନୂଆ ଆଲୋକ ପାଇଲେ ।

# ସେବାର ଫଳ

ଗୋପପୁରରେ ସକାଳ ହେଲା । କାଉ କା' ନ କରଣୁ କୃଷ୍ଣଙ୍କ ବଂଶୀ ବାଜି ଉଠିଲା । ଗୋପ ବାଳକମାନଙ୍କର ନିଦ ଭାଙ୍ଗିଗଲା । ସବୁ ଦିନେ କୃଷ୍ଣଙ୍କ ବଂଶୀ ଶୁଣି ସେମାନେ ଗୋରୁ ଫିଟାନ୍ତି । ଗୋରୁ ପଲ ନେଇ କୃଷ୍ଣଙ୍କ ସହ ବଣକୁ ଯଆନ୍ତି । ଆଜି ଏତେ ସକାଳୁ କୃଷ୍ଣ କାହିଁକି ବଂଶୀ ବଜାଇଲେ ? ସେମାନେ କୃଷ୍ଣଙ୍କ ଘରକୁ ଦଉଡ଼ିଲେ । ପଚାରିଲେ, ''ଆଜି ଏତେ ସକାଳୁ କାହିଁକି ଡାକୁଛ ?'' କୃଷ୍ଣ କହିଲେ, ''ଆଜି ଜଲ୍‌ଦି ଯିବା । ଯାଅ, ଗୋରୁ ଫିଟାଇ ଆଣ ।'' କୃଷ୍ଣ ଆଉ ଗୋପ ବାଳକମାନେ ଗୋରୁ ପଲ ନେଇ ବଣକୁ ଗଲେ ।

ସେ ଦିନ ବଣରେ ବହୁତ ଖେଳିଲେ । ସୂରୁଜ ଆସି ମଥା ଉପରେ ହେଲା । ଖେଳି ଖେଳି ସେମାନେ ହାଲିଆ ହୋଇପଡ଼ିଲେ । ଭୋକ ହେଲା । ସେତେବେଳେ ମନେ ପଡ଼ିଲା, ଆଜି ଭାତ ଆଣି ପାରିଲୁ ନାହିଁ । କ'ଣ ଖାଇବା ? ସେମାନେ କୃଷ୍ଣଙ୍କୁ ପଚାରିଲେ,

''ହେ କୃଷ୍ଣ ! ତମ ବଂଶୀ ଶୁଣି ବଡ଼ିସକାଳୁ ଚାଲି ଆସିଲୁ । ଆସିଲାବେଳେ ଭାତ ଆଣି ପାରିଲୁ ନାହିଁ । ଏବେ କ'ଣ ଖାଇବୁ ?''

ସେମାନଙ୍କ କଥା ଶୁଣି କୃଷ୍ଣ ହସିଲେ ଆଉ କହିଲେ, ''ଆମ ଦୁଇ ଭାଇଙ୍କୁ ମଧ ଭାରି ଭୋକ ହେଲାଣି । ଏଇ ଅଶୋକ ବନରୁ ଧୂଆଁ ଉଠୁଛି । ଗୋସେଇଁମାନେ ସେଠାରେ ହୋମ ଦାନ କରୁଛନ୍ତି । ଅତିଥି ସେବା କରୁଛନ୍ତି । ତୁମେମାନେ ସେଠିକି ଯାଅ । ତାଙ୍କୁ କହିବ, କୃଷ୍ଣଙ୍କୁ ଭୋକ ଲାଗୁଛି । ଖାଇବାକୁ ଦିଅ ।''

କୃଷ୍ଣଙ୍କ କଥା ମାନି ବାଳକମାନେ ଅଶୋକ ବନକୁ ଗଲେ । ଗୋସେଇଁମାନଙ୍କୁ ପ୍ରଣାମ କଲେ । କହିଲେ, ''କୃଷ୍ଣଙ୍କୁ ଭୋକ କରୁଛି । ଭାତ ଦିଅ ।'' ଗୋସେଇଁମାନେ ହୋମ କାମରେ ଲାଗିଥାନ୍ତି । ପିଲାମାନଙ୍କ କଥା ଶୁଣି ନ ଶୁଣିଲାପରି ହେଲେ । ପିଲାମାନେ କିଛି ସମୟ ଅପେକ୍ଷା କଲେ । ତା'ପରେ ନିରାଶ ହୋଇ ଫେରିଲେ ।

ସେମାନେ ଯାଇ କୃଷ୍ଣଙ୍କୁ କହିଲେ, ''ଗୋସେଇଁମାନେ ଆମ କଥା ଶୁଣିଲେ ନାହିଁ । ଆମେ ଭାବିଥିଲୁ ଗୋସେଇଁମାନେ ହୋମ କରୁଛନ୍ତି । ଦାନ ଦେବେ, ଆମେ ବୋହି ପାରିବୁ ନାହିଁ । ଏବେ ଦେଖ, ଆମେ ଖାଲି ହାତରେ ଫେରିଲୁ । ଭୋକରେ ହଂସା ଉଡ଼ିଯାଉଛି । କ'ଣ କରିବା କହ ।''

ଏହା ଶୁଣି କୃଷ୍ଣ ପୁଣି ହସିଲେ । ସେ କହିଲେ, ''ଏଇ ଯେଉଁ

ଗାଁଟି ଦିଶୁଛି , ତୁମେମାନେ ସେଠିକି ଯାଅ । ଗୋସେଇଁଙ୍କ ଘରଣୀମାନେ ସେଠାରେ ଅଛନ୍ତି । ତାଙ୍କୁ ମୋ କଥା କହିବ । ଖାଇବା ପାଇଁ ଭାତ ମାଗିବ ।''

ପିଲାମାନେ ସେ ଗାଁକୁ ଗଲେ । ସେମାନଙ୍କୁ କହିଲେ, ''ମା', କୃଷ୍ଣଙ୍କୁ ଭୋକ କରୁଛି । ସେ ଆମକୁ ପଠାଇଛନ୍ତି । ତାଙ୍କୁ ଖାଇବାକୁ ମୁଠାଏ ଦିଅ ।

କୃଷ୍ଣ ଭୋକରେ ଅଛନ୍ତି ଶୁଣି ଘରଣୀମାନଙ୍କର ଦୟା ହେଲା । ସେମାନେ ଅତି ଆଦରରେ କୃଷ୍ଣଙ୍କ ପାଇଁ ଭାତ ତିଅଣ ସଜାଡ଼ିଲେ । ପିଲାମାନଙ୍କ ସାଥିରେ କୃଷ୍ଣଙ୍କୁ ଦେଖିବାକୁ ବାହାରିଲେ ।

ମୁଣ୍ଡ ଉପରେ ଭାତ ତିଅଣ । ହୁଳହୁଳି ପକାଇ ଚାଲିଛନ୍ତି । ଗୋସେଇଁମାନେ ହୁଳହୁଳି ଶବଦ ଶୁଣିଲେ । କ'ଣ ହେଉଛି, କାହିଁକି ହୁଳହୁଳି ପଡୁଛି ? ଏହା ଭାବି ଦେଖିବାକୁ ଆସିଲେ । ଗୋସେଇଁଙ୍କ ଘରଣୀମାନେ ଚାଲିଛନ୍ତି । ଗୋସେଇଁମାନେ ତାଙ୍କ ବାଟ ଓଗାଳିଲେ । ହେଲେ ସେମାନେ ଅଟକିଲେ ନାହିଁ । ଠେଲି ପେଲି ଚାଲିଲେ ।

ଗୋସେଇଁଙ୍କ ଘରଣୀ ମାନେ କୃଷ୍ଣଙ୍କୁ ଦରଶନ କଲେ । ଖୁବ୍ ଖୁସି ହେଲେ । ତାଙ୍କ ମନକାମନା ପୂରଣ ହେଲା । କୃଷ୍ଣଙ୍କୁ ଆଦରରେ ଖୁଆଇଲେ । ପିଲାମାନେ ପେଟ ପୂରାଇ ଖାଇଲେ । ତା'ପରେ କୃଷ୍ଣ ତାଙ୍କୁ କହିଲେ, ''ମା'ମାନେ, ଏବେ ଘରକୁ ଯାଅ ।'' ଏହା ଶୁଣି ଘରଣୀମାନେ ବଡ଼ ଆକୁଳ ହେଲେ । ସେମାନେ କହିଲେ, ''ହେ



କୃଷ୍ଣ, ଏବେ ଆମେ ଆଉ କୁଆଡ଼େ ଯିବୁ ? ଆମେ ଆମ ପତିମାନଙ୍କ କଥା ନ ମାନି ତୁମ ନିକଟକୁ ଆସିଲୁ । ସେମାନେ ଆଉ ଆମକୁ ଘରେ ରଖିବେ ନାହିଁ । ତୁମେ ଆମକୁ ନ ରଖିଲେ ଆମେ କେଉଁ କୂଳର ହେବୁ କହ ?''

ଏହା ଶୁଣି କୃଷ୍ଣ ପୁଣି ହସିଲେ । ସେ କହିଲେ, ''ମା'ମାନେ ମୋ କଥା ମାନି ଘରକୁ ଫେରି ଯାଅ । ତୁମ ପତିମାନେ ତୁମକୁ ଭୁଲ୍ ବୁଝିବେ ନାହିଁ । ତୁମେମାନେ ଠିକ୍ କାମ କରିଛ । ନାରୀର ବଡ଼କାମ

ସେବା କରିବା । ଭୋକୀ ଲୋକକୁ ଖାଇବାକୁ ଦେବା ତାର ଧରମ । ଏଇ ସେବା ଯୋଗୁଁ ତୁମେ ସଂସାରରେ ପ୍ରଶଂସା ପାଇବ ।''

କୃଷ୍ଣଙ୍କ କଥାମାନି ସେମାନେ ଘରକୁ ଫେରିଲେ । ଗୋସେଇଁମାନେ ମାରଧର କରିବେ ବୋଲି ସେମାନଙ୍କ ମନରେ ଭୟ ଥାଏ । କୃଷ୍ଣଙ୍କ ନାମ ଜପକରି ଖୁସି ହେଉଥାନ୍ତି ।

ଗୋସେଇଁମାନେ ତାଙ୍କ ଭକତି ଦେଖି ରାଗିଲେ ନାହିଁ । ତାଙ୍କୁ କହିଲେ, ''ତୁମେମାନେ ଆମଠାରୁ ଅଧିକ ଭଲ କାମ କରିଛ । ଆମେ ଯାହାଙ୍କ ପାଇଁ ହୋମ କରୁଥିଲୁ ତାଙ୍କୁ ଜାଣି ପାରିଲୁ ନାହିଁ । ତୁମେ ତାଙ୍କ ସେବା କରିପାରିଲ । ତୁମେ ଧନ୍ୟ । ଏବେ ଆମେ ନିଜ ଭୁଲ୍ ବୁଝି ପାରିଲୁ ।''

(ଭାଗବତ କଥା)

# ଅପାଳାର ନିଜ କଥା

ମୋ ନାଁ ଅପାଳା । ମୋ ପିତାଙ୍କ ନାଁ ଅତ୍ରି ଋଷି । ସେ ଅତି ଆଦରରେ ମୋତେ ପାଳିଥିଲେ । ମୋ ପିଲାଦିନ ଋଷିକୁମାରଙ୍କ ମେଳରେ କଟିଗଲା । ତା' ପରେ ମୋ ଦେହରେ ଦେଖାଦେଲା ଧଳା ଧଳା ଦାଗ । ସେ ଦାଗକୁ ଦେଖି ମୋ ବାପାମା'ଙ୍କ ମନ ହେଲା ଦୁଃଖ । ସେ ଛଉକୁ ଭଲ କରିବା ପାଇଁ ବାପା କେତେ ପ୍ରକାର ଔଷଧ ଆଣିଲେ । ମୋ ଦେହରେ ଲଗାଇଲେ । ହେଲେ ଛଉ ବଢ଼ିଲା ସିନା, କମିଲା ନାହିଁ । ତେଣୁ ଔଷଧ ଲଗାଇବା ବନ୍ଦ କରିଦେଲେ । ଛଉ ଜମାରୁ ଭଲ ହେବନି ବୋଲି ଧରିନେଲେ ।

ମୋ ବାପା ମୋତେ କହିଲେ, ''ଏଥର ତୁ ପାଠ ପଢ଼ ।'' ମୁଁ ବେଦ ଆଦି ପଢ଼ିଲି । ମୋ ବେଦ ପାଠ ସମସ୍ତଙ୍କୁ ଭଲ ଲାଗିଲା ।

ମୋର ଆସି ବିବାହ ବୟସ ହେଲା । ପିତା ମୋ ପାଇଁ ବର



ଖୋଜିଲେ । ମୋ ଗୁଣ ଦେଖି ଭଲ ବର ବି ଜୁଟିଲେ । ଜଣେ ଋଷି କୁମାରଙ୍କ ସହ ମୋର ବାହାଘର ହେଲା । ସେ ଥିଲେ ଖୁବ୍ ସୁନ୍ଦର । ବହୁତ ପାଠ ପଢିଥିଲେ ।

ଶାଶୁଘରକୁ ଗଲି । ଶାଶୁ ଶଶୁରଙ୍କ ସହ ପତିଙ୍କ ସେବା କଲି । ସମସ୍ତଙ୍କଠୁଁ ଆଦର ସୋହାଗ ପାଇଲି । ଏପରି କିଛି ଦିନ ଆନନ୍ଦରେ କଟିଗଲା । ଧୀରେ ଧୀରେ ସେ ଧଳା ଛଉଗୁଡ଼ିକ ବଢ଼ିଗଲା । ମୁଁ ଅସୁନ୍ଦର ଦେଖାଗଲି । ବଡ଼ରୋଗ ଭାବି ମୋ ସହିତ କେହି ମିଶିବାକୁ

ଚାହିଁଲେ ନାହିଁ । ମୋ ପତି ବି ମୋ'ଠାରୁ ଆଡ଼େଇ ହୋଇଗଲେ । ମୋତେ ଭାରି ବାଧିଲା । ସେ ମୋତେ ହତାଦର କଲେ । ମୁଁ ଆଉ ସହି ପାରିଲି ନାହିଁ । ମୋ ପାଠପଢ଼ା କିଛି କାମରେ ଲାଗିଲା ନାହିଁ । ଏଇ ପାଠପଢ଼ା ମୋ ପାଇଁ ବି କାଳ ହେଲା । ପତିଙ୍କ ବିରୋଧରେ ମୁହଁ ଖୋଲିବାକୁ ଇଚ୍ଛା ହେଲା । ମନଟା ମୋର ପୋଡ଼ିଗଲା । ମୋ ସେବାର କ'ଣ କିଛି ମୂଲ୍ୟ ନାହିଁ ? ଏବେ ମୋ କଥା କିଏ ବୁଝିବ ?

ମୋ ନାଁ ଅପାଳା । କିନ୍ତୁ ମୁଁ ଅବଳା ନୁହେଁ । ମୋ ମନରେ ଅନେକ ବଳ । ନାରୀ ପୁରୁଷଠାରୁ କୌଣସି ଗୁଣରେ ଊଣା ନୁହେଁ । ନିଜକୁ ଗଢ଼ି ତୋଳିବାକୁ ହେବ । ଏକଥା ଭାବି ମୁଁ ଘର ଛାଡ଼ିଲି ।

ଯିବି କୁଆଡ଼େ ? ନାରୀ ଗୋଟିଏ ନଈ ପରି । ନଈର ଦୁଇ କୂଳ । ସେହିପରି ନାରୀର ଗୋଟିଏ କୂଳ ହେଲା ପତିକୂଳ । ଆଉ ଗୋଟିଏ ହେଲା ପିତୃକୁଳ । ପିତାଙ୍କ ଆଶ୍ରମକୁ ଫେରି ଆସିଲି । ପିତାମାତାଙ୍କର ଦୁଃଖର ସୀମା ରହିଲା ନାହିଁ । ତାଙ୍କ ଅନ୍ତେ ମୋର ଅବସ୍ଥା କ'ଣ ହେବ – ତାହା ଦିନ ରାତି ଭାବିଲି ।

ମୋ ରୋଗକୁ ଔଷଧ କାଟିଲା ନାହିଁ । ତେଣୁ ଆଶ୍ରମରେ ମୁଁ କଠୋର ସାଧନା କଲି । ଇନ୍ଦ୍ରଙ୍କୁ ଜଣାଇଲି, ମୋ ରୋଗ ଭଲ କରି ଦିଅନ୍ତୁ । ମୋ ସାଧନାରେ ଖୁସି ହୋଇ ଇନ୍ଦ୍ର ଆସିଲେ । ମୋତେ ବର ଯାଚିଲେ । ମୁଁ ବର ମାଗିଲି, ''ମୋ ଦେହରୁ ଧଳା ଦାଗ ଉଭେଇ ଯାଉ ।''

ଇନ୍ଦ୍ରଙ୍କ ଦୟାରୁ ମୋ ଦେହରୁ ଧଳା ଛଉ କୁଆଡେ ଲିଭିଗଲା । ମୋ ପତି ଏହି କଥା ଶୁଣି ଖୁସି ହୋଇଗଲେ । ମତେ ପୁଣି ଘରକୁ ନେଲେ । ପତିଙ୍କ ଆଦର ପାଇଲି । ମୁଁ ମୋ ସାଧନାର ଫଳ ପାଇଲି ।

**(ଋଗ୍‌ବେଦ ଅଷ୍ଟମ ମଣ୍ଡଳ ଅନୁସରଣରେ ଲିଖିତ)**

# ରାଜା ଓ ଶଗଡ଼ିଆ

ବହୁ କାଳର କଥା । ଗୋଟିଏ ରାଜ୍ୟ ଥିଲା । ସେ ରାଜ୍ୟରେ ଜଣେ ରାଜା  ରାଜୁତି କରୁଥିଲେ । ସେ ଥିଲେ ବଡ଼ ଦୟାଳୁ  । ପ୍ରଜାମାନଙ୍କୁ ସେ ନିଜର ପୁଅଝିଅ ଭଳି ପାଳନ କରୁଥିଲେ । ସେମାନଙ୍କୁ ବଡ଼ ସ୍ନେହ ଶ୍ରଦ୍ଧା ବି କରୁଥିଲେ । ବାଟୋଇଙ୍କ ରହିବା ପାଇଁ ସେ ସଡ଼କ କରି ଠା'କୁ ଠା' ଘର ତିଆରି କରିଥିଲେ । ସେଠାରେ ରହିବା ଓ ଖାଇବା ସୁବିଧା ଥିଲା । ସେଥିପାଇଁ ତାଙ୍କ ମନରେ ଖୁବ୍ ଗର୍ବ । ସେ ଭାବୁଥିଲେ ତାଙ୍କ ପରି ଦାନୀ ଆଉ ପରୋପକାରୀ ଏ ଦୁନିଆରେ କେହି ନାହିଁ ।

ଦିନକର କଥା । ସଂଜବେଳ । ରାଜା ରାଜଭବନର ଅଗଣାରେ ବସିଛନ୍ତି । ଏହି ସମୟରେ ହଂସ ହଂସୀ ଦୁଇଟି ତାଙ୍କ ନିକଟରେ ଆସି ବସିଲେ । ତାପରେ ସେମାନେ ନିଜ ନିଜ ଭିତରେ କଥା ବାର୍ତ୍ତା ହେଲେ । ରାଜା ଚଢ଼େଇମାନଙ୍କ କଥା ବୁଝିପାରୁଥିଲେ ।

ହଂସ ହଂସୀକୁ କହିଲା, - ଏ ରାଜା ଜଣେ ବଡ଼ ନାମଜାଦା ରାଜା । ତାଙ୍କ ନାଁ ଚାରିଆଡେ ଡାକ୍ ।

ହଂସୀ କହିଲା - ତୁମେ ସିନା ତାଙ୍କର ଏତେ ପ୍ରଶଂସା କରୁଛ, ହେଲେ ସେ ତାହା ନୁହନ୍ତି । ଜଣେ ଶଗଡ଼ିଆ ଅଛି । ସେ ରାଜାଙ୍କଠାରୁ ବହୁ ଗୁଣରେ ବଡ଼ ।

ହଂସ ପଚାରିଲା - କିପରି ?

ହଂସୀ କହିଲା- ତୁମ ରାଜା ଯାହା କରୁଛନ୍ତି ସବୁବେଳେ ତାଙ୍କ ପ୍ରଚାର ପାଇଁ । ଲୋକଙ୍କଠାରୁ ପ୍ରଶଂସା ଶୁଣିବା ପାଇଁ ତାଙ୍କର ଭାରି ଆଗ୍ରହ । ହେଲେ ଶଗଡ଼ିଆ ଗୋଟିଏ ଛୋଟ ଗାଁରେ ରହୁଛି । ସେ ଯାହା ଇଚ୍ଛା କରୁଛି, ତାହା କରିପାରୁଛି । ତେଣୁ ତୁମ ରାଜାଙ୍କ ତୁଳନାରେ ଶଗଡ଼ିଆର ସ୍ଥାନ ବହୁତ ଉଚ୍ଚରେ । ଏମିତି କଥା ହୋଇ ହଂସ ହଂସୀ ଦୁଇଟି ଉଡ଼ିଗଲେ ।

ରାତି ହେଲା । ହଂସ ଦୁଇଟିଙ୍କ କଥା ଭାବି ଭାବି ରାଜାଙ୍କୁ ନିଦ ହେଲା ନାହିଁ । ସକାଳ ହେଲା । ଭାଟମାନେ ରାଜାଙ୍କ ଗୁଣ ଗାନ କଲେ । ରାଜା ଭାଟମାନଙ୍କ ଗୀତ ବନ୍ଦ କରି କହିଲେ, ତୁମେ ଆଉ ମୋର ପ୍ରଶଂସା କର ନାହିଁ । କାରଣ ମୋ'ଠାରୁ ସବୁ ଗୁଣରେ ଆଉ ଜଣେ ବଡ଼ ଲୋକ ଅଛନ୍ତି । ତୁମେ ସମସ୍ତେ ତାଙ୍କରି ଗୁଣ ଗାଅ ।

ଏହାପରେ ସେହି ମହାପୁରୁଷଙ୍କୁ ଖୋଜିବାକୁ ସେ ତାଙ୍କ ଲୋକମାନଙ୍କୁ କହିଲେ । ରାଜାଙ୍କ ଲୋକେ ମହାପୁରୁଷଙ୍କୁ ଖୋଜିବାକୁ ବାହାରିଲେ । ସେମାନେ ଅନେକ ଜାଗା ବୁଲି ବୁଲି ତାଙ୍କୁ ପାଇଲେ ନାହିଁ । ଏଥିରେ ରାଜାଙ୍କ ମନ ବୁଝିଲା ନାହିଁ । ରାଜା ଆଉ ଥରେ ତାଙ୍କୁ ଖୋଜିବାକୁ ପଠାଇଲେ ।



ରାଜାଙ୍କ ଲୋକମାନେ ଏଥର ଗାଁକୁ ଗାଁ ବୁଲି ଖୋଜିଲେ । ଶେଷରେ ଗୋଟିଏ ନିପଟ ମଫସଲ ଗାଁରେ ଯାଇ ପହଞ୍ଚିଲେ । ସେଠାରେ ଲୋକେ ଦୂରରୁ ଗୋଟିଏ କୁଡ଼ିଆକୁ ଦେଖାଇଲେ ।

ସେମାନେ କହିଲେ, ଏହି କୁଡ଼ିଆରେ ଜଣେ ମହାପୁରୁଷ ଅଛନ୍ତି । ଆପଣମାନେ ତାଙ୍କ ପାଖକୁ ଗଲେ ସବୁ କଥା ଜାଣିପାରିବେ ।

ସେମାନେ କୁଡ଼ିଆ ପାଖକୁ ଗଲେ । ସେହି କୁଡ଼ିଆ ଆଗରେ ଗୋଟିଏ ଶଗଡ଼ ଥୁଆହୋଇଛି । ସେହି ଶଗଡ଼ ତଳେ ଜଣେ ଲୋକ ଚୁପ୍‌ଚାପ୍ ବସିଛନ୍ତି । ସେ ଜଣେ ସରଳ ଲୋକ ପରି ଦେଖାଯାଉଥିଲେ । ରାଜାଙ୍କ ଲୋକମାନେ ସେ ମହାପୁରୁଷ ବୋଲି ବିଶ୍ୱାସ କରିପାରିଲେ ନାହିଁ । ରାଜାଙ୍କ କହିଥିବା କଥାରେ ସେମାନଙ୍କର ସନ୍ଦେହ ହେଲା । ସେମାନେ ଭାବିଲେ- ରାଜାଙ୍କ କଥା ଠିକ୍ ନୁହେଁ । ଜଣେ ଅତି ସାଧାରଣ ଲୋକକୁ ସେ ମହାପୁରୁଷ ବୋଲି ଭାବିଛନ୍ତି । ତାଙ୍କୁ ଦେଖିବା ପାଇଁ ବ୍ୟାକୁଳ ହେଉଛନ୍ତି । ଏହା ଭାବି ସେମାନେ ରାଜାଙ୍କ ପାଖକୁ ଫେରି ଆସିଲେ । ତାଙ୍କୁ ସବୁ କଥା କହିଲେ ।

ଶଗଡ଼ିଆର ଖବର ପାଇ ରାଜା ଖୁସି ହୋଇ ତାଙ୍କୁ ଦେଖିବାକୁ ଗଲେ । ତାଙ୍କୁ ଦେବାପାଇଁ ରାଜା ଦୁହାଁଳିଆ ଗାଈ ଓ ଧନଦରବ ସାଙ୍ଗରେ ନେଇଥିଲେ ।

ଶଗଡ଼ିଆଟି ରାଜା ଓ ତାଙ୍କ ସହିତ ଆସୁଥିବା ଗାଈ ବାଛୁରୀ ଆଦି ଦେଖି କାବା ହୋଇଗଲେ ।

ଶଗଡ଼ିଆ ଆଗରେ ଠିଆହୋଇ ରାଜା ହାତଯୋଡ଼ି କହିଲେ- ମହାଶୟ ! ମୋର ଏଇ ଉପହାର ଗ୍ରହଣ କରନ୍ତୁ । ମୁଁ ଶାନ୍ତି ପାଇବା

ପାଇଁ ଚାହୁଁଛି । ହେଲେ କେଉଁ ଦେବତାଙ୍କୁ ପୂଜା କରିବି ଦୟାକରି ମୋତେ କୁହନ୍ତୁ ।

ଶଗଡ଼ିଆ ରାଜାଙ୍କ ଉପହାର ଦେଖି ଖୁସି ହେଲେ ନାହିଁ । ସେ ସରଳ ଭାବରେ କହିଲେ, ରାଜା ! ଏ ଜିନିଷ ମୋର କ'ଣ ହେବ ? ଏସବୁ ଫେରାଇ ନିଅନ୍ତୁ ।

ଏହା ଶୁଣି  ରାଜାଙ୍କର ମନ ଭାରି କଷ୍ଟ ହେଲା । ରାଜା ଭାବିଲେ, ଏ ଜଣେ ସାଧୁଲୋକ । ସେଥିପାଇଁ ଜିନିଷଗୁଡ଼ିକ ଏହାଙ୍କୁ ବୋଧେ ଅସାର ମନେ ହେଉଛି । ଏହା ଜାଣି  ରାଜାଙ୍କ ଅଭିମାନ ଦୂର ହେଲା । ତେଣୁ ରାଜା କହିଲେ - ମୁଁ ଆପଣଙ୍କ କଥା ବୁଝିପାରିଲି । ଆପଣ ଦୟାକରି ମତେ କିଛି ଉପଦେଶ ଦିଅନ୍ତୁ । କେଉଁ ଦେବତାଙ୍କୁ ମୁଁ ପୂଜା କରିବି ମୋତେ କହନ୍ତୁ । ଏହା ପରେ ସେ ଦୁହେଁ ଅନେକ ସମୟ ଧରି ନାନା ବିଷୟରେ ଆଲୋଚନା କଲେ ।

ସେ କହିଲେ- ରାଜା ! ଅନେକ ଦେବତା ଅଛନ୍ତି । ହେଲେ ଭଗବାନ ହେଉଛନ୍ତି ମୂଳ ଦେବତା । ଭଗବାନଙ୍କୁ କେହି ସୃଷ୍ଟି କରି ନାହିଁ । ସେ ସମସ୍ତଙ୍କୁ ସୃଷ୍ଟି କରିଛନ୍ତି । ଆମେ ସମସ୍ତେ ତାଙ୍କରି କାର୍ଯ୍ୟ କରୁଛୁ । ତାଙ୍କର ଇଚ୍ଛାରେ ସବୁ ହେଉଛି । ଆମେ ନିଜେ ସବୁ କରୁଛୁ ବୋଲି ଭାବିବା ଠିକ୍ ନୁହେଁ । ସବୁ ଜିନିଷ ଭଗବାନଙ୍କର । ତାହାକୁ ଦାନ ଦେଇ ସୁଖ ଆଶା କରିବା ଉଚିତ ନୁହେଁ ।

ଯେଉଁ ଲୋକ ଏହି କଥା ଜାଣେ, ଲୋକେ ତାଙ୍କୁ ଋଷି ବୋଲି କହନ୍ତି । ଏପରି ଲୋକର କିଛି ଅଭାବ ରହେ ନାହିଁ । ତେଣୁ ସେଇ ଲୋକ ପ୍ରକୃତ ଶାନ୍ତି ପାଏ, ଆଉ ସୁଖୀ ହୁଏ । ଫଳରେ ଆଶା ନ ରଖି ଭଲ କାମ କରି ଚାଲ । ସମସ୍ତଙ୍କୁ ଦୟା କର । ମନରେ ରାଗ ରୋଷ ଆଣ ନାହିଁ । ଏହା ଦ୍ୱାରା ତୁମେ ଜୀବନରେ ପ୍ରକୃତ ସୁଖ ଓ ଶାନ୍ତି ପାଇବ ।

ଏହା ଶୁଣି ରାଜା ଖୁବ୍ ଖୁସି ହେଲେ । ଜାଣିପାରିଲେ - ଏ ଜଣେ 'ମହାପୁରୁଷ' ।

# ତୁମେ କିଏ ?

ପାହାଡ଼ିଆ ନଈଟିଏ । ନଈ ଆରପାରିରେ ପଲେ ମେଣ୍ଢା ଚରୁଛନ୍ତି । ଗାଈଆଳ ଟୋକା ମନଖୁସିରେ ଗୀତ ବୋଲୁଛି । ସେପାରିରେ ଥାଇ ମେଣ୍ଢାପଲକୁ ଦେଖିଲା ସିଂହୀଟିଏ । ଜିଭରୁ ଲାଳ ବୋହିଲା । ଏତେ ଦିନ ହେଲା ପାଟିରେ ମାଉଁସ ବାଜିନି । ମେଣ୍ଢାପଲରୁ ଗୋଟିଏ ନେଇ ପଳେଇଲେ ଭଲ ହୁଅନ୍ତା ।

ନଈଟା ଅଣଓସାରିଆ । ସିଂହୀ ପେଟରେ ଛୁଆ ଥାଏ । ସେ ଖୁବ୍ ଜୋର୍‌ରେ ଡିଆଁଟାଏ ମାରିଲା । ଯାଇ ଆର ପାଖରେ ପଡ଼ିଲା । ମେଣ୍ଢାମାନେ ଇଆଡେ ସିଆଡେ ଦୌଡ଼ିବାରେ ଲାଗିଲେ ।

ସିଂହୀଟି ପଡ଼ିଗଲା । ଆଉ ଉଠି ପାରିଲା ନାହିଁ । ତା' ପେଟରୁ ଛୁଆଟିଏ ଖସିପଡ଼ିଲା ।

ଗାଈଆଳଟୋକା ଡିମା ଡିମା ଆଖିରେ ଚାହିଁ ରହିଲା ।

ସିଂହୀର ଡିଆଁ ଦେଖି ସେ ଡରି ଯାଇଥିଲା ।

ଗାଈଆଳଟୋକା ଦେଖିଲା ସିଂହୀଟି ମରି ଯାଇଛି । ଗୋଲଗାଲ ଛୁଆଟିଏ ତା' ପାଖରେ ପଡ଼ିଛି । ଉଠାଇ ନେଲା ପିଲାଟିକୁ ।



ସିଂହଛୁଆଟି ମେଣ୍ଢାପଲରେ ଦିନକୁ ଦିନ ବଢ଼ିବାରେ ଲାଗିଲା । ଭେଁ ଭେଁ ହୋଇ ବୋବାଳି ଛାଡ଼ିଲା । ଘାସ ଖାଇ ମନଖୁସିରେ ନାଚିଲା । ମେଣ୍ଢାଭଳି ଡ଼ରୁଆ ହୋଇ ରହିଲା ।

ଦିନକର କଥା । ନଈ ସେପାରିରେ ସିଂହଟିଏ ବୁଲୁଥାଏ । ସେ ଦୂରରୁ ମେଣ୍ଢାପଲକୁ ଦେଖିଲା ।ମେଣ୍ଢା ମାଂସ ବହୁଦିନ ହେଲା ଚାଖି ନଥିଲା । ତା' ମନ ଖୁଜୁ ବୁଜୁ ହେଉଥାଏ ।

ସେ ଦୂରରୁ ଚାହିଁଲା । ଭାବିଲା ମେଣ୍ଢା କେମିତି ଧରିବ । ହଠାତ୍ ସେ ମେଣ୍ଢାପଲ ଭିତରେ ଗୋଟିଏ ସିଂହଛୁଆ ଦେଖିଲା । ମନରେ ଭାବିଲା ମେଣ୍ଢାପଲରେ ଏ କିମିତି ରହିଲା ? ଏ ତ ମେଣ୍ଢା ନୁହେଁ । ସେ ମନେ ମନେ ଠିକ୍ କଲା ତାକୁ ଧରିବ । ଖୁବ୍ ଜୋର୍‌ରେ ରଡ଼ି କରି ନଈ ସେପାଖକୁ ଡ଼ିଆଁଟିଏ ମାରିଲା । ଗାଈଆଳଟୋକା ସିଂହ ଗର୍ଜନ ଶୁଣି ଡ଼ରି ପଳାଇଲା । ମେଣ୍ଢାମାନେ ଯିଏ ଯୁଆଡେ ବିକଳରେ ପଳାଇଲେ ।

ସେ ଛୁଆସିଂହ ପଛରେ ଗୋଡ଼ାଇଲା । ତାକୁ ମାଡ଼ି ବସିଲା ଓ ତା' ସାଙ୍ଗରେ ଜଙ୍ଗଲକୁ ନେଇଗଲା ।

ସିଂହଛୁଆଟା ଡ଼ହଳ ବିକଳ ହେଉଥାଏ । ଭେଁ ଭେଁ ରଡ଼ି ପକାଉଥାଏ ।

ସିଂହଟି ତାକୁ କହିଲା, "ଆରେ, ତୁ ସିଂହଛୁଆ । ଏମିତି କାହିଁକି ହେଉଛୁ ? ମେଣ୍ଢାମାନଙ୍କୁ ତୋର ଖାଇବା କଥା । ତୁ ତାଙ୍କ ସାଙ୍ଗରେ କାହିଁକି ରହିଛୁ ?"

ସେ ଏକଥା ଜମା ବୁଝିପାରିଲା ନାହିଁ । ଭୟରେ ରଡ଼ି ପକାଇଲା । ସିଂହ ମନରେ ବୁଦ୍ଧିଟିଏ ଯୁଟିଲା । ସେ ଛୁଆଟିକୁ ଝରଣା ପାଖକୁ ନେଇଗଲା ।

ଝରଣାର ପାଣି କାଚ ପରି ସଫା । ତଳକୁ ଚାହିଁଦେଲେ ମୁହଁ ଦେଖାଯାଉଥାଏ । ସିଂହଟି ଛୋଟ ଛୁଆଟିକୁ ପାଣି ପାଖରେ ଠିଆ କଲା । ତାକୁ କହିଲା, ''ତୁ ପାଣିକୁ ଚାହାଁ । ଦେଖ୍ ତୋ ମୁହଁ କିପରି ଦେଖାଯାଉଛି ।''

ଛୁଆଟି ପାଣିକୁ ଚାହିଁଲା । ତା' ନିଜ ଛାଇକୁ ଦେଖିଲା । ସେ ତା' ଭୁଲ୍ ବୁଝିଲା ।

ସିଂହଟି ଛୁଆଟିକୁ କହିଲା , ''ତୁ ମୋ ପରି ପାଟି ଆଁ କର । ଖୁବ୍ ଜୋରରେ ରଡ଼ି କର । ଦେଖ୍ ମୁଁ କେମିତି କରୁଛି ।''

ସିଂହ ସହିତ ତାଳମିଳାଇ ଛୋଟ ଛୁଆଟି ରଡି ପକାଇଲା । ବଡ଼ ଜୋରରେ ଗର୍ଜନ କଲା । ମେଣ୍ଢା ବୋବାଳି ଭୁଲିଗଲା । ଛୁଆଟି ଜାଣିଲା ସେ ହେଉଛି ସିଂହଛୁଆ । ତା' ଦେହରେ ବହୁତ ବଳ । ସେ ବୋବାଇଲେ ପାହାଡ଼ କଂପିଉଠୁଛି । ନିଜର ବଳ କେତେ ସେ ଜାଣିପାରିଲା । ସିଂହ ତାକୁ କହିଲା, ''ଆରେ ବାପା, ଆମେ ହେଉଛେ ପଶୁମାନଙ୍କର ରାଜା ।''

ଗୁରୁ ଶିଷ୍ୟକୁ ଉପଦେଶ ଛଳରେ ଏଇ ଗପଟି କହିଥିଲେ । ସେ ବୁଝାଇଦେଲେ, ମଣିଷ ଭଗବାନଙ୍କର ଅଂଶ । ତାଙ୍କଠାରୁ ଅଲଗା ନୁହେଁ । ଏକଥା ସମସ୍ତଙ୍କୁ ଜଣା ନାହିଁ । ନିଜେ ସିଂହ ବୋଲି ଯେମିତି ସିଂହଛୁଆଟି ଜାଣିପାରି ନ ଥିଲା ।

ଜଗତକୁ ଜାଣିଲେ, ତୁମେ ଭଲରେ ଚଳିବ । ଲୋକମାନେ ଭଲରେ ରହିବେ ।